# ଅର୍ଦ୍ଧାଙ୍ଗ-ପକ୍ଷୀ ।

ସୁରଙ୍ଗୀ ଅଧୀଶ୍ୱର

ଶ୍ରୀ ଚନ୍ଦ୍ରଚୂଡ଼ାମଣି ରାଜା ହରିଚନ୍ଦନ ଜଗଦ୍ଦେବ

ବରଚତ ।

ପ୍ରଥମ ମୁଦ୍ରଣ ।

**Printed by V. Kar.**

THE UTKAL SAHITYA PRESS,

**CUTTACK.**

**1917**

ମୂଲ୍ୟ ୦ • / ମାତ୍ର ।

# ଅର୍ଦ୍ଧାଙ୍ଗ-ପକ୍ଷୀ ।

(ନଟବାଣୀ ।)

ନିଦାରୁଣ କାଳ-ବ୍ୟାଧ ଶର ବାଜି
ରେ ପକ୍ଷି ତୋ ବାମ ଡେଣା ଗଲା ଭାଜି ।

ପାରୁ ନାହୁଁ ଉଡ଼ି ହୋଇଛୁ ଅକ୍ଷମ,
ଆଉ ଡେଣା ଅଦ୍ଧା ହେଲା କି ଚକ୍ଷମ ।

ଚଳନ ଶକତି ହୋଇଛି ରହିତ,
କରି ପାରୁ ନାହୁଁ ଖାଦ୍ୟ ସଂଗୃହୀତ ।

ଯେଉଁ ଡାଳେ ବସି ଲଭିଲୁ ଆଘାତ,
ତହୁଁ ଘୁଞ୍ଚି ତଳେ ନୋହୁ ଅତଯାତ ।

ନ ଛୁଇଁଲେ ଫଳ ଜଳ ଯିବୁ ସଡ଼ି,
ଶାବକ ଗୁଡ଼ିକ ରହିବେଁ ଉପଡ଼ି ?

ଡାଳେ ବସି ଶୋଚେ ହେଉ ଢଳମଳ,
ଶାବକମାନଙ୍କ ଦେଖିଣ ବିକଳ ।

ମାୟାମୋହେ ବଦ୍ଧ ଦୁର୍ବାର ପିପାସା
ପୋଷିଥିଲୁ ପ୍ରାଣେ, ଅହୋ କି ଦୁରାଶା !

କରୁଅଛୁ ସହ୍ୟ ଗ୍ରୀଷ୍ମ ବର୍ଷା ଶୀତ,
ଅଟେ ତୋ ଜୀବନ ପାଷାଣେ ପିହିତ ।

ନିୟତି ନିୟମ ଅଟେ ଅନିବାର୍ଯ୍ୟ,
କରନ୍ତି ସକଳେ ତାହା ଶିରୋଧାର୍ଯ୍ୟ ।

ହେଉ ମହାଯୋଗୀ ହେଉ ମହାଜ୍ଞାନୀ,
ଚଳିବାକୁ ବାଧ ତାହା ଆଜ୍ଞା ମାନି ।

ନ କର ରେ ପକ୍ଷୀ ବୃଥା ଚିନ୍ତା ମନେ,
ଭବିତବ୍ୟ ନଷ୍ଟେ ଭୁଞ୍ଜିବୁ ଜୀବନେ ।

କଅଁଳିବ ନାହିଁ ତୋର ଛିନ୍ନ ପକ୍ଷ,
ସିବ ନାହିଁ ଯୋଡ଼ି ବିଦୀର୍ଣ୍ଣିତ ବକ୍ଷ ।

ଦୁରନ୍ତ ପ୍ରକୃତି ନିଏ ଯା ଛଡ଼ାଇ,
ଦିଏ ନାହିଁ ତାହା କେବେ ବାହୁଡ଼ାଇ ।

ଘଟିବ ତୋ ଭାଗ୍ୟେ ଅବଶ୍ୟ ନିଧନ,
ହେବ ସର୍ବଥା ସେ ଧନ ହରଣ ।

ନ ଡର ତୁ ଦେଖି ମୃତ୍ୟୁ ବିଭୀଷିକା,
ସହିଯିବ ଦିନେ ତୋର କଣା ବିକା ।

ଆସିଛୁ ଯେସନ ଯିବୁ ତୁ ତେସନ,
ଶୂନ୍ୟ ଦେହେ ଭବ ଶୂନ୍ୟ ଆଭରଣ ।

ବସିଛୁ ଯେ ବୃକ୍ଷେ ତାହା ଫଳ ଖାଇ,
ବସୁଥା ରେ ପକ୍ଷି କେତେଦିନପାଇଁ ।

ଇଚ୍ଛାମତେ ପ୍ରାଣ ନ ଯାଏ ବାନ୍ଧାଇ,
କିପାଁ ହେଉ ଭଲ ବୃଥା ଶୋକେ ଘାରି

ମୃତ୍ୟୁ ଲାଗି ଜନ୍ମେ ଜୀବ ଏ ଭବରେ,
ଜନ୍ମ ପାଇ ପୁଣି ଯଥାକାଳେ ମରେ ।

ଜନ୍ମ ଲାଗି ଯେବା ମୃତ୍ୟୁର ବିଧାନ,
ମୃତ୍ୟୁ ସେହିପରି ଜନମ ନିଦାନ ।

ଦେହଯନ୍ତ୍ର ସଂସାରେ ଯାହା ଆସି ଜୀବ,
ଯାହା ଭାଙ୍ଗିଗଲେ କେବଣେ ଚଳିଯିବ ।

ବିଚରଣଶୀଳ ଜୀବାତ୍ମା ତପସ୍ୱୀ
ଶରୀର ମଧ୍ୟରେ ଥାଏ ଧ୍ୟାନେ ବସି ।

ଲୁଚିଯାଏ ପୁଣି ଶରେଁ ଉପଶେଷେ
କେଉଁ ଅନାମୟ ଅଜ୍ଞାତ ପ୍ରଦେଶେ ।

ଅମୃତ ସମାନ ମଣୁ ତୁହି ଯାହା,
କାଳେ ବିଷଗୁଣ ଧରିବଟି ତାହା ।

ଅନନ୍ତ କ୍ରନ୍ଦନ ଅନନ୍ତ ପ୍ରସାର,
ନିତ୍ୟ ବୋଲି ତାହା ଭ୍ରମେ ନ ବିଚାର ।

ଅନନ୍ତ ଜୀବନ-ପଦ୍ମପତ୍ରେ ନୀର,
ସଦା ଟଳଟଳ ନୁହେ କେବେ ସ୍ଥିର ।

ଜୀବନ-ଯାତ୍ରୀର ବସାଘର ଦେହ,
ନିରର୍ଥକ ଅଟେ ସେ ଘରର ସ୍ନେହ ।

ବର୍ଷା ଯାତ୍ରୀ ତହିଁ ରଖିବ ମମତା,
ସ୍ଥାୟୀ ହେବାର ତ ନାହିଁ ତା କ୍ଷମତା ।

କେବେହେଁ ନୁହେ ସେ କାହାର ଆୟତ୍ତ,
ଅଜ୍ଞାତ ଅଟେ ତା ଗତାଗତ ପଥ ।

ବାମ ଡେଣାଖଣ୍ଡି ଦେଇଛୁ ଯେ କାଟି,
ରଖିବ ନାହିଁ ସେ ଦକ୍ଷିଣ ଡେଣାଟି ।

ଦାରୁଣ କାଳର ବିକ୍ରମ ଅଟଳ,
ଅଲକ୍ଷିତେ ଆସି କରେ ସେ କବଳ ।

କାମ-କ୍ରୋଧ-ମୋହ-ମମତା-ଜାଲରେ
ରଙ୍ଗାଏ ସେ ସଦା ମାନବଜନକରେ ।

କାମନାରହିତ ଆରାଧନା କର୍ମ—
ବିନା ନାହିଁ ଆନ ଏ ଜୀବର ଧର୍ମ ।

କର୍ମ କଲେ ବୁଝି ତା ସାର ମରମ,
ବିଶ୍ରାମ ନେବାକୁ ମିଳେ ସୁଖାଶ୍ରମ ।

ନାହିଁ ଗଛ ତଳେ ଗତ ଜନ୍ମଫଳେ
ଯଥା ବୀଜ ତଥା ଫଳ କାଳେ ଫଳେ ।

ଡାଳେ ବସି ପକ୍ଷୀ ନ ଘୁମାଅ ଆଜ,
ଝାମ୍ପିନେବ ଊର୍ଦ୍ଧ୍ୱେ ମୃତ୍ୟୁ-ଦୂତ-ବାଜ ।

ଫଳପାଇଁ ଯେଉଁ ବୃକ୍ଷେ ତୋର ବସା,
ଘଟିଲୁ କାହିଁକି ସେ ବୃକ୍ଷେ ଏ ଦଶା ?

ଫଳ ଆଶାବଶେ କେତେ କେତେ ପ୍ରାଣୀ
ମୋହ-ମହୀରୁହେ ଉଠନ୍ତି ନ ଜାଣି ।

ନର ଦେହେ କର ପାଇଲେ ସାଧନା,
ତୁଇଁ ନ ପାଇବ ସଂସାର ଯାତନା ।

ନ ଚାହିଁ ରସାଳ-ଭ୍ରମେ ଭୁଲିଯାଇ,
ଦେଲୁ ମାକନ୍ଦ କୋଟରାକୁ ଖାଇ ।

ଏ ସୁନ୍ଦର ଭବ ମହାକାଳ ଫଳ,
ତା ରଙ୍ଗେ ଭୁଲିଲେ ହେବଟି ନିଷ୍ଫଳ ।

ବାସନାକୁ ନ ଦେ ହୃଦ ମଧ୍ୟେ ସ୍ଥଳ,
ଅଟେ ତାହା ସିନା ପ୍ରଚଣ୍ଡ ଅନଳ ।

ବିନା ଆମନ୍ତ୍ରଣେ ଦୁଷ୍ଟ ଚିନ୍ତା ଆସି
ଦେହେ ମିଶି ହେବ ମନ ପଦେ ଦାସୀ ।

ପରଶିଲେ ତାହା ନ ଛାଡ଼ିବ ଅଙ୍ଗ,
ବେଳକାଳ ବୁଝି ସାଧିବ ସେ ଦାଙ୍ଗ ।

ତାହା କୁହୁକରେ ଭୁଲିବୁ ଯେତେକ,
ଭୁଲାଇବ ତୋତେ ସର୍ବଦା ତେତେକ ।

ସେହି କୁହୁକିନୀ-କୁହୁକ-ଜାଲରେ
ପ୍ରାଣି-ମୀନ ମରେ କି କଲବଲରେ ।

ଆଶାର ଭଣ୍ଡାର ଅଟେ ଅକଳନ୍ତ,
ଯହିଁରେ ଅନୃତ ସମ୍ପତ୍ତି ସଞ୍ଚିତ ।

ସେ ସମ୍ପଦେ ମନ ବଳିଯାଏ ଯାର,
କେଉଁକାଳେ ତାର ନାହିଁକି ନିସ୍ତାର ।

ଭବ ହାଟେ ବାଟେ ସର୍ବଦା ଆଶାର
ଲାଗିଥାଏ କିଣା ବିକା କାରବାର ।

ତା ବିପଣି ପ୍ରତି ଯତନେ ଯେ ଆକୃଷ୍ଟ,
ନୋହିଛି ଏ ଭବେ ସେ ଏକା ଉତ୍କୃଷ୍ଟ ।

ଆଶାଠାରେ ଜଳ ସ୍ଥଳ ଭେଦ ନାହିଁ,
ପାରଇ ସେ ଜଳେ ଶକଟ ଚଳାଇ ।

ଥିଲୁ ତ ସ୍ୱର୍ଗରେ, କାହିଁକି ଏସନ
ଆଶା-ଜାଲେ ପଡ଼ି ହେଲୁ ଅବସନ୍ନ ।

ଫଳର ଆଶାରେ ଆସି ବୃକ୍ଷେ ବସି
ହୀନ ହେଲୁ ସିନା ଏ ବନରେ ପଶି ।

ହେଲେ ତୁମ୍ଭ ଦୁଷ୍ଟା ଆଶାର ଅଧୀନ,
ଭୁଞ୍ଜିବୁ ଅପାର କଷ୍ଟ, ହେବୁ ଦୀନ ।

ତାର ତନ୍ତ୍ରମନ୍ତ୍ରେ ହୋଇଣ ଦୀକ୍ଷିତ
ପ୍ରାଣିଏ ହୁଅନ୍ତି ସ୍ୱର୍ଗରୁ ବଞ୍ଚିତ ।

ଚହ୍ନି ନ ପାରିଲୁ ତାକୁ ମୂଢ଼ମତି,
ଚିହ୍ନିଥିଲେ କପାଁ ହୁଅନ୍ତା ଦୁର୍ଗତି ?

ତା ସମ୍ପର୍କ ଦୋଷୁଁ ସବୁ କ୍ଷଣେ ଭଲ,
ପୁଣି ପରକ୍ଷଣେ କରେ କଲବଲ ।

ଆଶା-କଣ୍ଟାପଥେ ହୋଇଲେ ପଥିକ,
ହୋଇଯାଏ କ୍ଷତ ଶରୀରେ ଅଧିକ ।

ଏହି ଭୟଙ୍କର ଲଗୁଡ଼ ଘାତରେ
ଆଶା-ଯଷ୍ଟି ପୃଷ୍ଠେ ବାଜେ ବାରେ ବାରେ ।

ପକ୍ଷି, ତୁମ୍ଭ ଦମ୍ପେ ଥାଅ ସଂଯମରେ,
ସଂଯମରେ କାର୍ଯ୍ୟ ହେବ ଏ ଜନ୍ମରେ ।

ସ୍ୱଯମ୍ଭୁରହୃଷ୍ଟି ପାରୁ ଯହି ସନ୍ଥ,
କଷ୍ଟ ଶୋକ ମୃତ୍ୟୁ ମୁଣ୍ଡୁ ଯିବୁ ବନ୍ଧ ।

ବାଧା ହ୍ରାସ ହେଲେ ଅର ତେଣା ଯୋଗେ
ହେବ କି ନବୀନ କାର୍ଯ୍ୟ ମନ ଯୋଗେ ।

ଉଡ଼ି ନ ପାରୁ ତ ଏ ଡାଳୁଁ ସେ ଡାଳ,
ସମାଧିସ୍ଥ ଯୋଗୀ ପରି ଯାପ କାଳ ।

ଯେଉଁ ଟକେ ଅଛୁ ସେ ଗଛୁ ଆନନ୍ଦ-
ଭରେ କମ୍ପୁଥାଅ ପିଇ ମକରନ୍ଦ ।

ମହାକାଳ ବଳ ଝଟିକା ପ୍ରବଳ,
ଝୁଙ୍କି ଦେବଟି ତୋ ବସା-ତରୁମୂଳ ।

ରେ ଅର୍ବାଚୀନ ପକ୍ଷି ! ଥାଅ ତୁ କାଗ୍ରତେ,
ଜଗିଛନ୍ତି ଅହିକୁଳ ଅଶରତେ ।

ପାଇ ନାହିଁ କାଳ-ସର୍ପ ଅବସର,
ନୋହିଲେ କରନ୍ତା କେତେ ହରବର ।

ମହା ମହା ଯୋଗୀ କେତେ କେତେ ବଳୀ
ଦେଉଛନ୍ତି ତାର ମୁଖେ ଆତ୍ମାବଳି ।

କାହାକୁ ସେ ଛାଡ଼ି ନାହିଁ ଏ ଜଗତେ,
ଛାଡ଼ିବ କି ତୋତେ, ନାହିଁ ତାକୁ ବ୍ରତେ ।

କଙ୍କାଳ-ଜାଲରେ ସେ କାଳ-ଧୀବର·
ଜୀବନ-ମୀନକୁ ଧରେ ହରବର ।

ନେତ୍ରେ ଜ୍ଞାନାଞ୍ଜନ ଦେଇ କଲେ ଯତ୍ନ,
ଗୁପ୍ତେ ଲୁପ୍ତ ହେବ ଲବ୍ଧପ୍ରାପ୍ତ ରତ୍ନ ।

ହତାଶ ବଶରେ ହୋଇଲେ ଅଯତ୍ନ,
ଯନ୍ତ୍ରଣା-ବତାସେ ବୃକ୍ଷ ହେବ ଷତ୍ନ ।

ସୁଖ ନୁହେ ସୁଖ, ଦୁଃଖ ନୁହେ ଦୁଃଖ,
ସମଝିବେ ଭୁଞ୍ଜି ନୋହ ତୁ ବିମୁଖ ।

ସୁଖକୁ ଲୋଡ଼ିଲେ ଦେବ ଦେଖା ଦୁଃଖ,
ନ ଉଭାର ମୁଖେ ଆଉ ସୁଖ ସୁଖ ।

ଦୁଃଖମଧ୍ୟ ଭବେ ସୁଖ ନାହିଁ ଲଭେ,
ତେଜ ସୁଖ ଆଶା ଏକାବେଳେ ଯବେ ।

ଯେଣାଟି ନ ଦେଖି ନୁହ ସନ୍ତାପିତ ,
କାହିଁ ବା ପାଇବୁ ସେ ଅସମ୍ଭାବିତ ।

ଏ ଜୀବନେ ଅଟେ ଅସମ୍ଭବ ଯାହା,
ପ୍ରାପ୍ତ୍ୟାଶା ତାହାର ବୃଥା ସିନା ହା ହା !

ଯାହା ଅର୍ଜିଅଛୁ ତାହା ହେବ ଭୋଗ,
ହେଉ ପଛେ ତାହା ମାରାତ୍ମକ ରୋଗ ।

ମର୍ମବ୍ୟଥା ଲାଗି ନ କହିଲେ କଥା,
ମୂକ ହୋଇଣ କି ରହିବୁ ସର୍ବଥା ।

କର୍ମଫଳେ ଜୀବ କରଇ ଭ୍ରମଣ,
ଅକର୍ମ ସେବାରେ ବୃଥା ଶ୍ରମପଣ ।

ମାୟାର ଘୂର୍ଣ୍ଣନେ ହୋଇଣ ଘୂର୍ଣ୍ଣିତ,
ମୋକ୍ଷଭିକ୍ଷାରୁ ନ ହୁଅ ବଞ୍ଚିତ ।

ଅଗମ ନିଗମ ସୁଗମ ପରମ—
ଭବମୁକ୍ତ କାର୍ଯ୍ୟ ଅଟଇ ଉତ୍ତମ ।

ବିଷୟ-କାନ୍ତାରେ ବଣା ନୁହ ଆଉ,
ସମ୍ବଳ ସଂଗ୍ରହ ବେଳ ଥାଉ ଥାଉ ।

ବାସନା-କୁସୁମେ ସୁଧାଭ୍ରମେ ବସି
ବିଷ ପାନ କଲେ ପଡ଼ିବୁଟି ଖସି ।

ଛାଗଳସ୍ୱରୂପ ଅଟେ ଅପସନ,
କାଳ-ଶାର୍ଦ୍ଦୂଳର ସୁପ୍ରିୟ ଅଶନ ।

ଦେହ ତୁଚ୍ଛ ଆଉ ରଖିଲେ ମମତା,
ରହିବ ନାହିଁ ଟି ନିଜ ସ୍ୱାଧୀନତା ।

ଶରଣରକ୍ଷଣ ବାନା ଉଡ଼େ ଦେଖ,
ମୁକ୍ତି ପାଉଛନ୍ତି ତୋ ପରି ନରେଖ ।

ଡାକ ଡାକ ପକ୍ଷି ଉଚ୍ଚନାଦ କରି,
ପରମପିତାଙ୍କୁ ଭକ୍ତିଭରେ ସ୍ମରି ;
ଭକ୍ତି-ବାରି ଭରି ହୃଦ-ସରୋବରେ
ଫୁଟାଅ ଭକତ-କମଳ ସତ୍ୱରେ ।
ଅଚିନ୍ତ୍ୟ ଅବ୍ୟକ୍ତ ପ୍ରଭୁ ନିରଞ୍ଜନ
ବିନା କେ କରିବ ଏ ଦୁଃଖ ଭଞ୍ଜନ ।
ସେ ଏକା ବରେଣ୍ୟ, ସେ ଏକା ଶରଣ୍ୟ,
ତାଙ୍କ ପଦତଳେ ପଶ ତୁ ଶରଣ ।
ଅଗତିର ଗତି ଜଗତର ପତି,
ସାଧୂଙ୍କର ସଦା ପକ୍ଷପାତୀ ଅଟି ।
ଦୟା କରିବେଟି ତୋତେ ଦୟାମୟ,
ଭଜ ଭଜ ଶୀଘ୍ର ପାଇବୁ ଅଭୟ ।
ଜଣେ ଏକା ଏକାକ୍ଷରୀ ନାମ-ଜଳ
ସେଚନେ ଲିଭିବ ସନ୍ତାପ-ଅନଳ ।
ଅମର-ବନ୍ଦିତ-ପଦକୁ ସ୍ମରଣ—
କରି କର ଦୂର ଏ ଘୋର୍ କଷଣ ।
ମାତା ପିତା ଦାରା ସୁତ ସହୋଦର,
କେହି ନୁହେ କାର, ଜାଣ ତୁ ନିକର ।

ନାଶିବାକୁ ଘୋର କଳୁଷର ଦାଉ
ଏତାଦୃଶ ନାମ ବିନା ନାହିଁ ଆଉ ।

ସ୍ମର ସେ ନାମକୁ ବିଳମ୍ବ ନ କର,
ବିଳମ୍ବରେ କାର୍ଯ୍ୟ ହେବ ତ ଦୁଷ୍କର ।

ଯତ୍ନ କରି ରଖିଥିବୁ ଏବେ ଯାହା,
କାଳେ କାର୍ଯ୍ୟକର ହୋଇବଟି ତାହା ।

ସ୍ମର ସ୍ମର ପଦେ କୃପାକୂପାରକୁ,
ସେହୁ ଏକା ତରୀ ଦୁଃଖାମ୍ବୁପାରକୁ ।

ନାହିଁ ନାହିଁ ଆଉ ବିଳମ୍ବରେ କାର୍ଯ୍ୟ,
ବିଳମ୍ବେ ଯନ୍ତ୍ରଣା ହେବ ଅନିବାର୍ଯ୍ୟ ।

ଥାଉଁ ଥାଉଁ ଚେତା ସେ ପ୍ରଭୁଙ୍କଠାରେ
ତନୁ ପ୍ରାଣ ଅର୍ପି ଲାଗ ତୁ ସେବାରେ ।

ବାଞ୍ଛାନିଧି ବାଞ୍ଛା କରିବେ ପୂରଣ,
ବିପତ୍ତି-ବିଷକୁ କରିଣ ହରଣ ।

ସମର୍ପିବୁ ଯେବେ ତାଙ୍କ ପଦେ ମତି,
ପଶି ନ ପାରିବ କାଳ ତୋର କତି ।

ଭବପାର ସ୍ଥଳ ସେ ପଦ-କମଳ,
ଅସହାୟଙ୍କର ସହାୟ କେବଳ ।

ପତିତପାବନ ମୋକ୍ଷର ସଦନ,
ଦୁଃଖିର ଅମୂଲ୍ୟ ପରମରତନ ।

କୃପାସିନ୍ଧୁ ହରି ଶୁଣିବେ ଗୁହାରି,
ଏ ସନ୍ତାପ-ସିନ୍ଧୁ ହୋଇଯିବୁ ପାରି ।

ପରୀକ୍ଷାର୍ଥୀ ତୁହି, ପରୀକ୍ଷା ଯାତନା
ପାଇଲେହେଁ ତାହା ନ କର ଶୋଚନା ।

ବାଲ୍ୟକାଳେ ବିଦ୍ୟାଭ୍ୟାସ କଷ୍ଟ ପରି,
ହରି ସେବା ଅଗ ଅଗ କଷ୍ଟକରୀ ।

ସେ ନାମ ସ୍ମରଣ ବିନା ନାହିଁ ଗତି,
ସେ ନାମେ ସର୍ବଦା ରଖିଥାଅ ମତି ।

ସେ ନାମାମୃତରେ ନଶ୍ୱର ଜୀବନେ
ଅମର ଜୀବନ ଅର୍ଜ୍ଜନ୍ତି ଜନେ ।

ପାନ କଲେ ଏକାକ୍ଷରୀ-ନାମ-ସୁଧା,
ପୀଡିବ କି ଆଉ ଭବ ମାୟା-କ୍ଷୁଧା ।

ମମତା ମାୟାରେ ହୋଇ ବିଜଡ଼ିତ,
କେଣାପାଇଁ ଆଉ ନୁହ ସନ୍ତାପିତ ।

ଏ ବିଶାଳ ମହାଦ୍ରବ-ବନେ ଏକ—
କେଣାକଣ୍ଠା ପକ୍ଷୀ ଅଛନ୍ତି ଅନେକ ।

ହୋଇଯାଅ ସାଥି ସେମାନଙ୍କ ତୁଲେ,
ଅନୁତାପାଗ୍ନିଲେ ନ ଛୁଅଁ ରେ ଭୁଲେ ।

ବେଳ ଅବସାନ ଆସି ହୋଇଲାଣି,
ମନ ବଳ୍ଗୁ ନାହିଁ ନେବାକୁ ମେଲାଣି ।

ତୋହର ଚପଳ ଦଶା ଦେଖି ସତେ,
ମୁହିଁ ଭୁକ୍ତଭୋଗୀ ବୋଲି ହୁଏ ପ୍ରତେ ।

ସୁଗୁଣ ଦୁର୍ଗୁଣ ସଂସର୍ଗବଶରେ
ଆସିଯାଏ ଅପେ ଅପେ ସ୍ୱଭାବରେ ।

ତୋ ଦର୍ଶନେ ପ୍ରାପ୍ତ ହେଲି ମହାଶିକ୍ଷା,
ହେଲ୍‌ମୋର ଗୁରୁ ନ ଦେଇ ତୁ ଦୀକ୍ଷା ।

ସେ ଗୁରୁଦକ୍ଷିଣା ରହିଯିବ ବାକୀ,
ଭକ୍ତ-ହସ୍ତେ ମୁହିଁ ଅସିଦ୍ଧ ଏକାକୀ ।

ସେବା କରି ଶୁଝି ଦେବି ଦକ୍ଷିଣାକୁ,
ଅନୁମତି ଦିଅ ସେନ ମୋର କାକୁ ।

ରହିଲି ମୁଁ ତରୁତଳେ ଜଗି ଜାଗି,
ତୋହ ସଙ୍ଗେ ଦୁଃଖେ ହୋଇ ସମଭାଗୀ ।

ସମାପ୍ତ ।

Printed by V. Kar, the U. S. Press, Cuttack.